# କେମାଦେଈଙ୍କ କାନ୍ଦ



ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ



Printed by D. Rath,

**AT THE STORE PRESS.**

**BERHAMPORE (Ganjam)**

1927.

ମୂଲ୍ୟ ଦୁଇପଇସା ମାତ୍ର

# ହେମାଦେଈର କାନ୍ଦ ।



ଶୁଣ ହେ ସୁଜନ ଜନ । ଅପୂର୍ବ ବିଧି ବିଧାନ । ହେମା ଯିବେ ଶାଶୁଘର । ନେବେ ସମ୍ଭାଳି ଯେ । ୧ । ହେମା ବୋଲନ୍ତି ଗୋ ମାତା । ପାଳିଛ ମୋତେ ଯତ୍ନଭ । ଏବେ ଦରିଆରେ ନେଇ । ଦେଲ ଭସାଇ ଗୋ । ୨ । କି ସ୍ନେହରେ ପାଳିଥିଲ । ଏବେ ଦୂର କରିଦେଲ । କେମନ୍ତେ ଯାଉଛି ହେଳ । ମୋ କର୍ମ ହୀନ ଯେ । ୩ । ଝିଅକୁ ଧରିଣ କୋଳେ । ଜନନୀ ବିକଳ ହେଲେ । ଦୁଲଣା ମୋହର ଭୁଲି । ମୂର୍ଚ୍ଛିବ କେହ୍ନ ଲୋ । ୪ । ଖାଇ ଅଣ୍ଟେଇ ନ ଜାଣୁ । ଭୁଖୁ ରୁ କହିଲେ ତେଣୁ । ପଦେ ଦେଇନାହିଁ ଗାଳି । ମୋ ଧନ ମାଳି ଲୋ । ମାଆ ଯେ କରଇ ବୋଧ । ଶୁଣ ମୋ ହୃଦଆ ଚନ୍ଦ । ଜାଲି କରି ଯିବୁ ଅନ୍ଧ । ଆଉ ନ କାନ୍ଦ ଲୋ । ୬ । ସଖୀ ସଙ୍ଗାତ ମାନଙ୍କୁ । ଡାକି ଆଣିବା ଘରକୁ । ତାହାଙ୍କ ସଙ୍ଗେ ଖେଳିବୁ, ଥରେ ଖାଇବୁ ଲୋ । ୭ । ଜନ୍ମ ଦେଲେ ପିତା ମାତା । ଯାହା ଲେଖିଛି ବିଧାତା, ତାହା କେ କରିବ ଆନ ମୋ ଗଣ୍ଠି ଧନ ଲୋ । ୮ । ମାତା ପାଶୁଁ ହେମା ଗଲେ । ପିତାଙ୍କ ପାଶେ ମିଳିଲେ । ପିତାଙ୍କ ହସ୍ତ ଧରିଣ । କଲେ ରୋଦନ ଯେ । ୯ । ବାପା ହେ ନିରାଶ ମୋତେ । କରିବ- ନାହିଁଟି ଚିତ୍ତେ । କି ବୁଦ୍ଧି କରିବି ମୁହିଁ । ବଞ୍ଚିବି କାହିଁ ହେ । ୧୦ । ବାପା ବୋଲନ୍ତି ଗୋ ଝିଅ । ଆଉ ତୁ ବିକଳ ନୁହ । ଦେଲି ଘର ବର ଦେଖି । ନୁହ ତୁ ଦୁଃଖି ଲୋ । ଜାଇକି ଦେବି ପଠାଇ । ସଙ୍ଖୋଳି ଆସିବ ନାଇ । ଏଥକୁ କନ୍ଦାଇ ଭାଳି । ମୋ ଧନ ମାଳି ଲୋ । ୧୨ । ଖୁଡୁତା ମୁଖକୁ ଚାହିଁ । ହେମା ଶୋକଭର ହୋଇ । ଦାଦା ହେ ନିରାଶ କଲ । ମୋତେ ଛାଡ଼ିଲ ହେ । ୧୩ । ସହଜେ ବାଳୁତ ମୁହିଁ । ବୁଦ୍ଧି ବାଟ ନ ଦିଶଇ । ନ ଜାଣଇ ଭଲ ମନ୍ଦ । ମୋ କର୍ମ ମନ୍ଦ ହେ । ୧୪ । ଦାଦା ପାଶୁଁ ହେମା ଗଲେ । ଖୁଡ଼ୀ ପାଶରେ ମିଳିଲେ ।

ଛିଅଛି ଖୁଡ଼ୀର ମେଳ । ଅତି ବିକଳ ହେ ॥ ଛିଅଛି ମୋହର ଭୁଲ୍ଲ । କେମନ୍ତେ ମୂର୍ଚ୍ଛିବି ମୁହିଁ । କାହାକୁ ସଙ୍ଗେ ଘେନିବି । ଖେଳ ଖେଳିବି ଗୋ ॥ କାହା ମୁଣ୍ଡ ବାନ୍ଧି ଦେବି । ସଙ୍ଗରେ ଗାଧୋଇ ନେବି । କାହାକୁ ସଙ୍ଗେ ଧରିବି । ଖାଇ ବସିବି ଗୋ ୧୭ । ମାଇଁକି ଜେମା କହଇ । ଅତି ଶୋକଭର ହୋଇ । ହଳଦ୍ରବ ବାଛି ଯେତେ । କେ ଦେବ ମୋତେ ଗୋ । ୧୮ । ତୁମ୍ଭ ମୁଖକୁ ଆଉ ତ । ଦେଖିବି ନାହିଁ ମୁହିଁ ତ । ନିରାଶ ହୋଇ ରହିବି । ଦୁଃଖ ସହିବି ଗୋ । ୧୯ । ଜେମାକୁ କହଇ ମାଇଁ । ଖୁଲ୍ଲତା ବାପ ଅଛଇ । ନିରାଶ ହୋଇବ ନାହିଁ । ଯିବେଟି ଭାଇ ଗୋ । ୨୦ । ମିଳିଲେ ସେଠାରେ ଅପା । ବୋଲେ ଏଡ଼େ ଶୋକ କିମ୍ପା । ହୋଇବ ଜେମା ତାଠକା । ନପାଇ ତକ୍ଷା ଗୋ । ୨୧ । ତହୁଁ ଜେମା ଗଲେ ଚଳି । ନନାଙ୍କ ପାଶରେ ମିଳି । ନନା ନନା ବୋଲି ଶୋକ । କଲେ ଅନେକ ହେ । ୨୨ । ନନା ହେ ନିରାଶ କଲ । ଦୂରଦେଶେ ପେଲି ଦେଲ । କାହାକୁ ଜେମା ଡାକିବ । କିଏ ଆସିବ ହେ । ୨୩ । ଡାଳ ଦାନ୍ତ-କାଠି ପାଣି । ପାଖକୁ କେ ଦେବ ଆଣି । ବୋଲିବ ଗାମୁଛା ନିଅ । ସ୍ନାନକୁ ଯାଅ ହେ । ୨୪ । ଯହୁଁ ଚଳିବ ସ୍ନାନକୁ । ଅନାଇ ଥିବ ବାଟକୁ । ତିଳକ ଚନ୍ଦନପେଡ଼ି । ଥିବ ସଜାଡ଼ି ହେ । ୨୫ । ସୁବର୍ଣ୍ଣ ଥାଳୀରେ ଅନ୍ନ । ଆଣି ଦେବ ମୁଁ ବହନ । ବଢ଼ିଅ କାହାକୁ ଦେବ । ପାଶେ ବସିବ ହେ । ୨୬ । ଶୁଣି ଜେମାର ବିକଳ, ଭାଇ ବୋଲନ୍ତି ନଭାଳ । ମାସକୁ ମାସ ମୁଁ ଯିବି । ସଙ୍ଗୋଳିଥିବ ଲୋ । ୨୭ । ବାପାଙ୍କ ପାଖରେ କହି । ଘେନି ଆସିବି ମୁଁ ଯାଇ । ନ କର ଚିନ୍ତା ମନରେ । ଯିବ ସଙ୍ଗରେ ଲୋ । ୨୮ । ତହୁଁ ଜେମା ଗଲେ ଚଳି । ବୋହୂଙ୍କ ପାଶରେ ମିଳି । ବୋହୂ ନଣନ୍ଦଙ୍କୁ ଧରି । ରୋଦନ କରୁ ଯେ । ୨୯ । ଯେତେ ଅଳି କଲେ ମୋତେ । ଶରଧା ଲାଗଇ ଚିତ୍ତେ । ଭୁଜା ଗଜା ଥୋଇ ଥାଇ । ନଖାଇ ମୁହିଁ ଗୋ । ୩୦ । କୋଳେ ବସାଇ ଖୁଆଇ । ତହୁଁ ପଛେ

ଭାତ ଖାଇ । କୃଣ୍ଠାଇ କେ ମାଗିନେବ । ଖେଳ ଖେଳିବ ଗୋ । ୩୧
ପିଠିକରି ଦିବ ମୋତେ । ଆଉକି ଦେଖିବ ନେତ୍ରେ । ଶୁଣିବଟି ମୋ
ନଣନ୍ଦ । ନ ଜାଣେ ଛନ୍ଦ ଦ୍ୱନ୍ଦେ । ୩୨ । ନଣନ୍ଦ ହାତ ଧରଣ । ବୋହୂ
ଜନ୍ମେ ତଥାଚରଣ । ଉଦଣ୍ଡୀ କେବେ ନୋହିବ । ଧୀରେ ଚଳିବ ଗୋ
। ୩୩ । ତୁମ ଶାଶୁ ଶଶୁରଙ୍କୁ । ସେବା କରୁଥିବ ତାଙ୍କୁ । ଗୁରୁପ୍ରାପ୍ତ
ଥିବ ମଣି । ନୋହିଲେ ହାନି ଗୋ । ୩୪ । ଝିଅସ୍ୱା ପୁତୁର
ଯେବେ । ଅଳଙ୍କାରଣ ମାଗିବେ । ତାଙ୍କମନ ଜାଣି ଦେବ । ଚଳି-
ନ ହେବ ଗୋ । ନଣନ୍ଦଙ୍କ ସଙ୍ଗେ ବାଦ । ନକରିବ ଛେଦ ଭେଦ ।
ବଡ଼ଜାଙ୍କୁ ଜଳେ ମୋର । କରିବ ଘର ଗୋ । ୩୬ । ଦେଢ଼ଶୁରଙ୍କ
କଥାରେ । ରହିଥିବ ତତପରେ । ଆଡ଼ ଓଢ଼ଣରେ ରହିବ । ତୁଣ୍ଡ
ନ ଦେବ ଗୋ । ୩୭ । ଗୃହସ୍ଥଙ୍କ ପ୍ରତି ପ୍ରୀତି । ପାଳିଥିବ ଯଥା
ରୀତି । ଅପଯଶ ନ ପାଇବ । ସୁଲଭ ହେବ ଗୋ । ୩୮ । ସାଇ
ପଡ଼ଶା ମାନଙ୍କୁ । କଥା ନ କହିବ ତାଙ୍କୁ । ଯେତ ମିଛ ଦେବେ
କହି, କଳି ଲଗାଇ ଗୋ । ୩୯ । ଏହି କଥାକୁ ବିଚାର
ରହିଥିବ ହେତୁ କରି । ନୁହଇ ଆପଣା ଘର । ପର ମନ୍ଦିର ଗୋ
୪୦ । ଏତେ କହି ବୋହୂ ଥିର । ଧରି ଓଠ ନଣନ୍ଦର । ବୋଇଲା
ଭାଳିବନାହିଁ । କହୁଛି ମୁହିଁ ଗୋ । ୪୧ । ଖେଳିବ ର ସଙ୍ଗୀମାନେ ।
ଦେଖି ଅଇଲେ ବହନେ । ତାଙ୍କର ଦେଖି ବ୍ୟାକୁଳ । ହେମା ଆକୁଳ
ହେ । ୪୨ । କେ ବୋଲେ ଅଗୋ ସଙ୍ଗାତ । କେ ବୋଲଇ ଅଗୋ
ମିତ । ଛାଡ଼ିଯାଉଛ ଆମ୍ଭଙ୍କୁ । ଦୂର ଦେଶକୁ ଗୋ ॥ କହେ ସଙ୍ଗାତକୁ
ମୁହିଁ । ଛାଡ଼ି ଯାଉଅଛି ମୁହିଁ । ପକାଉଥିବ ମନରେ । ପ୍ରତି ଦିନରେ
ଗୋ ॥ ମିତକୁ ହେମା କହଇ । ମୋତେ ପାସୋରିବ ନାହିଁ । ବଉଳ
ଅଶୋକା କଢ଼ୀ । ଯାଉଛି ଛାଡ଼ି ଗୋ । ୪୫ । ଖେଳକଉଡ଼ିକ ମାନ ।
ଆଜିଠାରୁ ହେଲା ଶୂନ୍ୟ, ଦଇବ ଏହା ପାଞ୍ଚିଲା । ଛଡ଼ାଇ ଦେଲା
ଗୋ । ୪୬ । ଯେତେ କି ତୁମ୍ଭ ସଙ୍ଗରେ । ଦେଖା ଦେଖି ହେବ ଥରେ ।

ମନରେ ପରତେ ନାହିଁ । କକଲା ବନ୍ଧୁ ଗୋ । ୪୭ । ମିତବୋଲେ ଶୁଭେ ଯାଅ । ଆନନ୍ଦରେ ହେନ ନଅ । ତୁମ୍ଭ ପଛ ଆମ୍ଭେ ଯିବୁଁ । ଏଥିକ ଥିବୁଁ ଗୋ । ୪୮ । ଏମନ୍ତେ ଜଣ ଜଣଙ୍କୁ । ହେମା କହେ ସମସ୍ତଙ୍କୁ । ବାଜିଲା ଶଙ୍ଖମହୁର । ପଡ଼ିଲା ହୁର ଗୋ । ୪୯ । ଝିଅ ନେବାର ସମ୍ଭାର । ବାହାରକଲେ ସତ୍ୱର । ଯେତେ ଆଡ଼ାଖୁରମାନ । କଲେ ଯତନ ଯେ । ୫୦ । ସର୍ବେ ହୁଳହୁଳ ଦେଲେ । ହେମାକୁ ବାହାର କଲେ । ମିତ ସଙ୍ଗାତ ସହିତେ । ଚଳି ସଙ୍ଗତେ ଯେ ॥ ଲୀଳାବତୀକି ଯେ ନେଲେ । ସବାରିରେ ବସାଇଲେ । ନାନାବାଦ୍ୟ ବଜାଇଲେ । ସର୍ବେ ଚଳିଲେ ହେ । ୫୧ । ବନ୍ଧୁ ବାନ୍ଧବ ଅପାର । ଅଛନ୍ତି ସେ ସଙ୍ଗତରେ । ରାତ ପହରକେ ଯାଇ । ମିଳିଲେ ତହିଁ ଯେ । ୫୩ । ସବାରି ଦ୍ୱାରେ ଥୋଇଲେ । ଲୁଗା ବାଡ଼ ଦେଖାଇଲେ, ଧରି ଲୀଳାବତୀ କର । କଲେ ବାହାର ଯେ । ୫୪ । ସ୍ନାତ ପାଞ୍ଚ ନାରୀ ମିଳି । ସର୍ବେଦେଲେ ହୁଳହୁଳୀ । ଅନ୍ନ ନଡ଼ିଶ୍ଚଳ ଦେଲେ ଘରକୁ ନେଲେ ଯେ । ୫୫ । ଉଥାଗୃଭଳ ଅଞ୍ଚଳ । ଶ୍ରୀଫଳ ଧରଣ ବାଳୀ । ଈଶାନ କୋଣରେ ଦେଇ । ଓଳଗି ହୋଇ ଯେ ॥ ଗୁରୁ ଗୁରୁଜନଙ୍କୁ ସ୍ନେହେ । ଓଳଗଇ ମନ ତୋଷେ । କଲ୍ୟାଣ ସମସ୍ତେ କଲେ । ହରଷ ହେଲେ ଯେ ॥ ହେମା ନେବାର ସମ୍ଭାର । ବୁହାଇନେଲେ ସେ ଘର । ତରଗ୍ର ବନ୍ଧୁ ବର୍ଗର । କଲେ ସୁଖର ହେ । ୫୮ । ଭୁଞ୍ଜି ସର୍ବେ ସୁସ୍ଥ ହେଲେ । ସୁଖେ ନିଶି ପୁହାଇଲେ । ମେଲାଣି ଯେହ୍ନେ ପାଇଲେ । ସର୍ବେ ଚଳିଲେ ହେ । ୫୯ । ଲୀଳାବତୀ ଶାଶୁଘରେ । ରହିଲା ସୁଖେ ଶୁଭରେ । ଧନ ପୁତ୍ରବନ୍ତୀ ହେଲା । ଦନ ହରିଲା ହେ । ୬୦ । ଲୀଳାବତୀର ଚରିତ । ହେମା ବୋଲି ନାମେ ଗୀତ । କହଇ ନାଥ ଅନନ୍ତ । ଭାବ ଅଦ୍ଭୁତ ହେ ॥

—ꕥ∘○∘ꕥ—

ସମାପ୍ତ ।

ଏହି ଠିକଣାକୁ ପତ୍ର ଲେଖନ୍ତୁ

# ହନୁମାନ ପୁସ୍ତକାଳୟ



ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ,-ବୁକ୍‌ସେଲର,

ପୋ: ବ୍ରହ୍ମପୁର (ଗଞ୍ଜାମ) ।

ଆମ୍ଭ ନିକଟରେ କଲିକତା କଟକ ଓ ଅନ୍ୟାନ୍ୟ ସ୍ଥାନର ପୁସ୍ତକମାନ ଯାହାକ ଉତ୍କଳାକ୍ଷରରେ ମୁଦ୍ରାଙ୍କ ହୋଇ ପ୍ରକାଶିତ ହୋଇଅଛି, ତାହା ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ଗ୍ରାହକମାନେ ଲୋଡ଼ିଲେ ଭ: ପି: ଡାକଦ୍ୱାରା ପଠାଉଁ । କଟକରେ ଯେଉଁ ଦର କମିଶନ ଦିଅନ୍ତି ଆମ୍ଭେ ସେହିଦର ଦେଉଅଛୁଁ । ଥରେ ପାରିଲେ ମଗାଇ କାରବାର ଦେଖନ୍ତୁ, ସତ୍ୟାସତ୍ୟ ବୁଝିବେ । ଅଧିକ ଲେଖିବା ନିଷ୍ପ୍ରୟୋଜନ ।

| | | | |
|---|---|---|---|
| ଦଶମସ୍କନ୍ଧ (ଗୋପ) | ଟ ୦ ୧ | ଏକାଦଶସ୍କନ୍ଧ | ଟ ୦ ୷ |
| ଏକନ୍ (ଦ୍ୱାରକା) | ଟ ୦ ୧୷ | ବିଲଙ୍କା ରାମାୟଣ | ଟ ୦ ୧୷ |
| ରାସକ୍ରୀଡ଼ା | ଟ ୦ ୵୬ | ଗୋପୀ ଭାଷା | ଟ ୦ ୯ ୯ |
| କମଳଲୋଚନ | ଟ ୦ ୯ ୩ | ସୀତାଙ୍କ ବନ୍ଧାର | ଟ ୦ ୯ ୯ |

| | |
|---|---|
| ସର୍ବମାହାନ୍ତ ସାହୁ,<br>ପୋ: ବ୍ରହ୍ମପୁର, ଜି: ଗଞ୍ଜାମ | ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ<br>ବୁକ୍‌ସେଲର |